# ଏଡ୍‌ସ
# ଓ
# ତା'ର ପ୍ରତିକାର



ଡକ୍ଟର ବିଷ୍ଣୁପ୍ରିୟା ଦେବୀ

# ଏଡ୍‌ସ ରୋଗ
# ଓ
# ତା'ର ପ୍ରତିକାର

ଡକ୍ଟର ବିଷ୍ଣୁପ୍ରିୟା ଦେବୀ, ଏମ୍.ଡ଼ି.

ବିଭାଗୀୟ ମୁଖ୍ୟ ଚର୍ମ, ଯୌନ, କୁଷ୍ଠ ଓ ଏଡ୍‌ସ ରୋଗ ବିଭାଗ
ଶ୍ରୀ ରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ, କଟକ

ସଞ୍ଜୟ ପବ୍ଲିଶର୍ସ

# ଏଡ୍‌ସ ରୋଗ ଓ ତା'ର ପ୍ରତିକାର

ଲେଖିକା :
ଡକ୍ଟର ବିଷ୍ଣୁପ୍ରିୟା ଦେବୀ

ପ୍ରକାଶକ :
ସଞ୍ଜୟ ପବ୍ଲିଶର୍ସ
ବିଶ୍ୱନାଥଲେନ୍
କଟକ-୭୫୩୦୦୨

ପ୍ରଥମ ସଂସ୍କରଣ : ୧୯୯୭

ମୁଦ୍ରଣ :
ଗ୍ରାଫ୍ 'ଏନ୍' ଗ୍ରାଫିକ୍ସ
ଓଡ଼ିଆ ବଜାର, କଟକ-୧

ମୂଲ୍ୟ- ଟ ୬-୦୦ ମାତ୍ର

# ଏଡ୍‌ସ ରୋଗ ଓ ତା'ର ପ୍ରତିକାର

ସେଦିନ ଡ୍ରଇଂରୁମ୍‌ରେ ପିଲାମାନଙ୍କ ସାଙ୍ଗରେ ବସିଥାଏ । ରଙ୍ଗିନ୍ ଟି.ଭି.ର ପରଦା ଉପରେ ଏଡ୍‌ସ ରୋଗର ବିଜ୍ଞାପନ ଚାଲିଥାଏ । ଅନ୍ୟମନସ୍କ ଭାବରେ ନୂଆ ଆସିଥିବା ଡାକ୍ତରି ମ୍ୟାଗାଜିନ୍‌ଟିଏ ଓଲଟଉଛି, ହଠାତ୍ କାନରେ ବାଜିଲା ପିଲାଙ୍କର ଏକ ଅଦ୍ଭୁତ କଥାବାର୍ତ୍ତା । ଚୁମୁକି କହୁଛି ''ଏ ବାବୁଲା ଭାଇ. ଏଡ୍‌ସ ରୋଗ କ'ଣ କିରେ ?''

ବାବୁଲାର ଉତ୍ତର - ''ସେ କିଛି ନୁହଁ ମ, ଗୋଟାଏ ଦୁଇଟା କଣ୍ଡୋମ ବଟିକା ଖାଇଦେଲେ ଭଲ ହୋଇଯିବ ।''

ନିଜ କାନରେ ଠିକ୍‌ରେ ଶୁଣିଥିବା କଥାଟା ମୁଣ୍ଡଟାକୁ ଗୋଳମାଳ କରିଦେଲା । ଦଶବର୍ଷରୁ ପନ୍ଦରବର୍ଷ ଭିତରେ ଚାରି ପାଞ୍ଚଜଣ ପିଲା ପଡ଼ିଶାଘରର । କ'ଣ କିମିତି କରି ବୁଝେଇବି ସେମାନଙ୍କୁ ଏଡ୍‌ସ ରୋଗ କ'ଣ ?

# ଏଡ୍‌ସ କି ପ୍ରକାର ରୋଗ ?

ଏଡ୍‌ସ ଏକ ଇଂରାଜୀ ଖଣ୍ଡବାକ୍ୟ । ଏହା ଚାରୋଟି ଅକ୍ଷରକୁ ନେଇ ଗଠିତ । "AIDS"ରେ ଥିବା ଚାରୋଟି ଅକ୍ଷରକୁ ନିମ୍ନଲିଖିତ ଭାବେ ବିସ୍ତାରିତ କରାଯାଇ ପାରେ ।

A = "Acquired" ଅର୍ଥାତ୍ ଯାହା ନିଜ ଇଚ୍ଛା ଅନୁଯାୟୀ ଅର୍ଜନ କରାଯାଇଥାଏ ।

I = "Immuno" ଅର୍ଥାତ୍ ରୋଗ ପ୍ରତିରୋଧକ ଶକ୍ତି ।

D = "Deficiency" ଅର୍ଥାତ୍ ଅଭାବ ବା ନଷ୍ଟ ହୋଇଯିବା ।

S = "Syndrome' ଅର୍ଥାତ୍ ବିବିଧ ରୋଗ ଲକ୍ଷଣ ।

ଏହି ରୋଗର ଉପଶମ ପାଇଁ କୌଣସି ଔଷଧ ନାହିଁ । ତେଣୁ ମୃତ୍ୟୁ ସୁନିଶ୍ଚିତ ।

ଏହି ରୋଗ ଏକ ଭୂତାଣୁ ଦ୍ୱାରା ସଂକ୍ରମିତ ହୋଇଥାଏ । ଏହି ଭୂତାଣୁର ନାମ 'HIV' ଭାଇରସ (Human Immuno deficiency Virus).

ପୃଥିବୀର ସବୁ ଦେଶରେ ଏହି ରୋଗ ଦେଖା ଦେଇଛି । ଭାରତର ପ୍ରତ୍ୟେକ ପ୍ରଦେଶରେ ଏହି ରୋଗ ଦେଖାଦେଲାଣି ।

ଡାକ୍ତର ଲକ୍ ମଣ୍ଟାନିୟର ୧୯୮୩ ମସିହା ମେ ମାସରେ ପ୍ୟାରିସ୍‌ର ପାଶ୍ଚର ଲାବୋରେଟରିରେ ଏଡ୍‌ସ ରୋଗର ଏହି ଭୂତାଣୁକୁ ଆବିଷ୍କାର କରିଥିଲେ ।

**ଏଡ୍‌ସ ରୋଗର ଭୂତାଣୁ :**



ଏଡ୍‌ସ ଭୂତାଣୁ

ଏଡ୍‌ସ ରୋଗର ଭୂତାଣୁକୁ ଏଚ୍.ଆଇ.ଭି. ଭାଇରସ୍ କୁହାଯାଏ । ଏହି ଭୂତାଣୁ ଶରୀରରେ ପ୍ରବେଶ କଲେ ଏଡ୍‌ସ ରୋଗ ହୋଇଥାଏ ।

ଏଚ୍.ଆଇ.ଭି. ଭୂତାଣୁ ଉପରେ ଦିଆଯାଇଥିବା ଚିତ୍ର ପରି ଦେଖାଯାଏ, ମାତ୍ର ଏହା ଏପରି ଭାବରେ ଆମ ଖାଲି ଆଖିକୁ

ଦେଖାଯାଏ ନାହିଁ କିମ୍ବା ସାଧାରଣ ଅଣୁବୀକ୍ଷଣ ଯନ୍ତ୍ରତଳେ ମଧ୍ୟ ଦେଖାଯାଏ ନାହିଁ । ଏହା ଅତ୍ୟନ୍ତ କ୍ଷୁଦ୍ର, ଯାହାକି କେବଳ ବହୁ ଶକ୍ତିଶାଳୀ ଇଲେକ୍ଟ୍ରନ ଅଣୁବୀକ୍ଷଣ ଯନ୍ତ୍ର ଦ୍ୱାରା ଦେଖାଯାଏ ।

ସାଧାରଣତଃ ଭୂତାଣୁମାନେ ଜୀବାଣୁମାନଙ୍କଠାରୁ ବହୁଭାବରେ ଭିନ୍ନ । ଜୀବାଣୁମାନଙ୍କଠାରୁ ଭୂତାଣୁମାନେ ଆକାରରେ କ୍ଷୁଦ୍ର । ଜୀବାଣୁମାନେ ସାଧାରଣ ଅଣୁବୀକ୍ଷଣ ଯନ୍ତ୍ରଦ୍ୱାରା ଦେଖାଯାଆନ୍ତି ମାତ୍ର ଭୂତାଣୁ ମାନେ ଏହାଦ୍ୱାରା ଦେଖାଯାଆନ୍ତି ନାହିଁ । ଭୂତାଣୁମାନେ କେବଳ ଶକ୍ତିଶାଳୀ ଇଲେକ୍ଟ୍ରନ ଅଣୁବୀକ୍ଷଣ ଯନ୍ତ୍ର ଦ୍ୱାରା ଦେଖା ଯାଇଥାନ୍ତି । ଜୀବାଣୁମାନେ ଫିଲଟର୍ ଦ୍ୱାରା ଛାଣି ହୋଇ ରହିଥାଆନ୍ତି ମାତ୍ର ଭୂତାଣୁମାନେ ଫିଲଟର୍ ଭେଦକରି ଚାଲିଯାଇପାରନ୍ତି । ଭୂତାଣୁମାନେ ଦୁଇପ୍ରକାର । ଯଥା ଆର୍.ଏନ୍.ଏ. ଭୂତାଣୁ ଓ ଡି.ଏନ୍.ଏ. ଭୂତାଣୁ । ଏଡ୍ସର ଭୂତାଣୁ ଆର୍.ଏନ୍.ଏ. ଭୂତାଣୁ । ଏହା ଶରୀରର ଜୀବକୋଷରେ ପ୍ରବେଶ କଲାପରେ ଡି.ଏନ୍.ଏ. ଭୂତାଣୁରେ ପରିବର୍ତ୍ତିତ ହୋଇଥାଏ । ଏହି ପ୍ରକାର ପ୍ରକ୍ରିୟା ଏକ ବିଶେଷ ଧରଣର ଏନ୍‌ଜାଇମ୍ ଦ୍ୱାରା ହୋଇଥାଏ । ଏହି ଏନ୍‌ଜାଇମ୍‌କୁ ରିଭର୍ସ ଟ୍ରାନ୍ସକ୍ରିପ୍‌ଟେଜ୍ କୁହାଯାଏ । ଏହି ପ୍ରକାର ବିପରୀତ ଧରଣର ଗତି

(ଆର୍.ଏନ୍.ଏ. ରୁ ଡି.ଏନ୍.ଏ. ପରିବର୍ତ୍ତନ) ହେଉଥିବା ଯୋଗୁ ଏଚ୍.ଆଇ.ଭି. ଭାଇରସକୁ ମଧ୍ୟ ରେଟ୍ରୋ ଭାଇରସ କୁହାଯାଏ ।

ଏଚ୍.ଆଇ.ଭି. ଭାଇରସର ବ୍ୟାସ ୧୦୦ ନାନୋମିଟର । ଏକ ନାନୋମିଟର ୧ ମିଲିମିଟରର ଦଶ ଲକ୍ଷ ଭାଗରୁ ଭାଗେ । ଏହାର ଏକ ବାହ୍ୟ ଆବରଣ ଅଛି ଓ ଏକ ଗାଢ଼ ଲମ୍ବାଳିଆ ନାଭିକେନ୍ଦ୍ର ଅଛି । ଏହି ନାଭିକେନ୍ଦ୍ରରେ ଆର୍.ଏନ୍.ଏ. ଓ ତାହା ସାଙ୍ଗରେ ସେ ବିଶିଷ୍ଟ ଧରଣର ଏନ୍‌ଜାଇମଟି ଥାଏ ।

ଏଚ୍.ଆଇ.ଭି. ଭାଇରସର ଘୋଡ଼ଣୀ ଓ ନାଭିକେନ୍ଦ୍ରରେ କେତେକ ବିଶିଷ୍ଟ ଧରଣର ପୁଷ୍ଟିଅଂଶ ଜଡ଼ିତ ଥାଏ । ଏଗୁଡ଼ିକ ଆଣ୍ଟିଜେନ ନାମରେ ପରିଚିତ । ଏହି ଅଂଶଗୁଡ଼ିକ ରକ୍ତରେ ନିଜ ନିଜ ପାଇଁ ପ୍ରତିରୋଧକ ଅଂଶସବୁ ସୃଷ୍ଟି କରିଥାନ୍ତି । ଏହାକୁ ଆଣ୍ଟିବଡ଼ି କୁହାଯାଏ ।

ଏଚ୍.ଆଇ.ଭି. ଭୂତାଣୁ ଶରୀରରେ ପ୍ରବେଶ କରିଥିଲେ ଡାକ୍ତରମାନେ ଭୂତାଣୁ, ଭୂତାଣୁର ଆଣ୍ଟିଜେନ ଓ ଭୂତାଣୁର ଆଣ୍ଟିବଡ଼ି ପ୍ରଭୃତିକୁ ବିଭିନ୍ନ ପରୀକ୍ଷା ମାଧ୍ୟମରେ ଚିହ୍ନଟ କରି ରୋଗ ନିର୍ଣ୍ଣୟ କରିଥାନ୍ତି ।

## ଏଡ୍‌ସ ଭୂତାଣୁର ଜନ୍ମ :

୧୯୭୦ ମସିହା ବେଳକୁ ଏହି ଭୂତାଣୁମାନେ ଆଫ୍ରିକା ମହାଦେଶର ଏକ ପ୍ରକାର ସବୁଜ ମାଙ୍କଡ଼ମାନଙ୍କ ଦେହରେ ଥିଲେ । କାଳକ୍ରମେ ଏହି ଭୂତାଣୁମାନେ ପରିବର୍ତ୍ତିତ ପରିସ୍ଥିତିରେ ସେଠାକାର ମଣିଷମାନଙ୍କ ଦେହରେ ପ୍ରବେଶ କଲେ । ଏହାର ପରବର୍ତ୍ତୀ କାଳରେ ସମଲିଙ୍ଗୀ ଯୌନ ସମ୍ପର୍କ ଦ୍ୱାରା ଏହା ଯୁକ୍ତରାଷ୍ଟ୍ର ଆମେରିକାରେ ବ୍ୟାପୀ ଥିଲା ।

## ଏଡ୍‌ସ ରୋଗ ପ୍ରଥମ ଚିହ୍ନଟ ହେଲା କିପରି ?

୧୯୮୧ ମସିହା ଜୁନ୍ ମାସ । ଯୁକ୍ତରାଷ୍ଟ୍ର ଆମେରିକାର ଲସ୍ ଆଞ୍ଜେଲେସ୍ ସହରର ଚାରିଜଣ ଯୁବକ ସାଂଘାତିକ ବେମାରରେ ଡାକ୍ତରଖାନାରେ ଭର୍ତ୍ତି ହେଲେ । ସେମାନଙ୍କ ଦେହରେ ବେଶୀ ଜର ଥିଲା । କାଶ ହେଉଥିଲା । ଛାତିରେ କଷ୍ଟ ହେଉଥିଲା । ନିଃଶ୍ୱାସ ପ୍ରଶ୍ୱାସ ନେବାରେ ମଧ୍ୟ କଷ୍ଟ ହେଉଥିଲା । ପାଟିରେ ଓ ଜିଭରେ ଛତ୍ରକ ମାଡ଼ି ଯାଇଥିଲା ।

ପରୀକ୍ଷାରୁ ଜଣାଗଲା ଯେ ଯୁବକମାନଙ୍କର ନିମୋନିଆ ରୋଗ ହୋଇଛି । ସେମାନଙ୍କଠାରୁ

ଏଚ୍.ଆଇ.ଭି. ଭୂତାଣୁ ମିଳିଥିଲା । ଜଣଙ୍କଠାରେ ଚର୍ମ କ୍ୟାନ୍ସର ହେବାର ଲକ୍ଷ୍ୟ କରାଯାଇଥିଲା । ସମସ୍ତଙ୍କଠାରେ ରୋଗ ପ୍ରତିରୋଧ ଶକ୍ତି କମ୍ ଥିଲା । ରକ୍ତରେ ଶ୍ୱେତରକ୍ତକଣିକା କମ୍ ଥିଲା । ରୋଗାକ୍ରାନ୍ତ ଯୁବକମାନେ ଆଗରୁ ଏଭଳି ରୋଗରେ ଆକ୍ରାନ୍ତ ହୋଇ ନ ଥିଲେ ।

ଆମେରିକାରେ ଏହି ପ୍ରକାର ରୋଗୀ ଚିହ୍ନଟ ହେବା ପରେ ୟୁରୋପରେ ମଧ୍ୟ କେତେକ ରୋଗୀ ଚିହ୍ନଟ ହେଲେ । ଏହା ମଧ୍ୟରେ ପୃଥିବୀର ୧୯୦ଟି ଦେଶରେ ଏ ରୋଗ ଚିହ୍ନଟ ହୋଇ ସାରିଲାଣି ।

ମିଳିଥିବା ହିସାବରୁ ଜଣାଯାଏ ପୃଥିବୀରେ ବର୍ତ୍ତମାନ ଏକ କୋଟି ଲୋକ ଏଡ୍ସ ରୋଗରେ ଆକ୍ରାନ୍ତ ହୋଇ ସାରିଲେଣି । ଭାରତବର୍ଷରେ ସର୍ବପ୍ରଥମ ୧୯୮୬ ମସିହାରେ ଏଡ୍ସ ରୋଗୀ ଚିହ୍ନଟ କରାଯାଇଥିଲା ।

## ଏଚ୍.ଆଇ.ଭି. ଭାଇରସ୍ ରୋଗ ସୃଷ୍ଟି କରେ କିପରି ?

ଏଚ୍.ଆଇ.ଭି. ଭୂତାଣୁ ରୋଗୀଠାରୁ ସୁସ୍ଥଲୋକ ଦେହରେ ପ୍ରବେଶ କଲେ ଏହି ରୋଗ ହୋଇଥାଏ ।

ଏଡ୍‌ସ ରୋଗ ଭୋଗ କରୁଥିବା ରୋଗୀର ରକ୍ତ, ଧାତୁ, ପାଟିର ନାଳ, ଦେହର ଝାଳ, ଆଖିର ଲୁହ ଓ ମା'ର କ୍ଷୀରରେ ଏହି ଭୂତାଣୁମାନେ ଥିବାର ଜଣାଯାଇଛି ।

ମୁଖ୍ୟତଃ ରୋଗୀର ରକ୍ତ ଓ ଧାତୁ ଦ୍ୱାରା ରୋଗ ସଂକ୍ରମଣ ହୋଇଥାଏ । ଏହାବ୍ୟତୀତ ଏଡ୍‌ସ ରୋଗ ଭୋଗ କରୁଥିବା ଗର୍ଭବତୀ ସ୍ତ୍ରୀ ଲୋକମାନଙ୍କର ଗର୍ଭସ୍ଥ ଶିଶୁକୁ ମଧ୍ୟ ଏହି ରୋଗ ହୋଇପାରେ ।

★ ଯେ କୌଣସି ଏଡ୍‌ସ ରୋଗୀ ସହିତ ସୁସ୍ଥଲୋକର ଯୌନ ସମ୍ପର୍କ ରହିଲେ ରୋଗୀର ଧାତୁରେ ଥିବା ଭୂତାଣୁମାନେ ସୁସ୍ଥ-ଲୋକ ଦେହରେ ପ୍ରବେଶ କରି ରୋଗ ସୃଷ୍ଟି କରିଥାନ୍ତି । ସମଲିଙ୍ଗୀ ଯୌନ ସମ୍ପର୍କରେ ଏଡ୍‌ସ ରୋଗର ସମ୍ଭାବନା ଅଧିକ ।

★ ଏଡ୍‌ସ ରୋଗ ଭୋଗ କରୁଥିବା ରୋଗୀଠାରୁ ରକ୍ତ ଗ୍ରହଣ କଲେ ଏହି ରୋଗ ହୋଇଥାଏ ।

★ ରୋଗୀର ବ୍ୟବହାରରେ ଆସିଥିବା ଇଂଜେକ୍‌ସନ୍ ଛୁଞ୍ଚି, ଅପରେସନ୍‌ରେ ଲାଗୁଥିବା ଯନ୍ତ୍ରପାତି, ଦାନ୍ତ ଓପାଡ଼ିବା ଯନ୍ତ୍ର ଇତ୍ୟାଦି ସୁସ୍ଥଲୋକ ବ୍ୟବହାର କଲେ ଏହି ରୋଗ ହୋଇଥାଏ ।

★ ଏଡ୍‌ସ ରୋଗ ଭୋଗ କରୁଥିବା ନିଶାଗ୍ରସ୍ତ ଯୁବକମାନେ ନେଉଥିବା ନିଶା ଇଂଜେକ୍‌ସନ୍ ଛୁଞ୍ଚିରେ ସୁସ୍ଥଲୋକ ଇଞ୍ଜେକ୍‌ସନ୍ ନେଲେ ଏହି ରୋଗ ହୋଇଥାଏ ।

## କେଉଁମାନଙ୍କର ଏଡ୍‌ସ ରୋଗରେ ଆକ୍ରାନ୍ତ ହେବାର ସମ୍ଭାବନା ଅଧିକ ଥାଏ

★ ଯୌନ ଉଚ୍ଛୃଙ୍ଖଳ ଯୁବକ ଯୁବତୀ ।

★ ଅତୀତ ଓ ବର୍ତ୍ତମାନ ଅବସ୍ଥାରେ ବାରମ୍ବାର ନିଶା ଇଂଜେକ୍‌ସନ୍ ନେଉଥିବା ଯୁବକ-ଯୁବତୀ ।

★ ଯେଉଁ ରୋଗୀମାନେ ନିଜ ରୋଗର ଚିକିତ୍ସା ପାଇଁ ବାରମ୍ବାର ରକ୍ତ ତଥା ରକ୍ତଜାତ ପଦାର୍ଥସବୁ ଇଂଜେକ୍‌ସନ୍ ମାଧ୍ୟମରେ ନିଅନ୍ତି ।

★ ଏଡ୍‌ସ ରୋଗ ଭୋଗ କରୁଥିବା ମା'ଠାରୁ ଜନ୍ମ ନେଇଥିବା ଶିଶୁ ।

★ ଡାକ୍ତରଖାନାରେ ଠିକ୍ ଭାବରେ ବିଶୋଧିତ ହୋଇ ନ ଥିବା ଯନ୍ତ୍ରପାତି ଓ ଇଂଜେକ୍‌ସନ୍ ଛୁଞ୍ଚି ଇତ୍ୟାଦି ବ୍ୟବହାର କରିବା ଦ୍ୱାରା ମଧ୍ୟ ଏହି ରୋଗ ହେବାର ସମ୍ଭାବନା ଥାଏ ।

★ ଯୌନ ରୋଗ ଭୋଗ କରୁଥିବା ଓ ବହୁ ଲୋକଙ୍କ ସଙ୍ଗରେ ଯୌନ ସମ୍ପର୍କ ରଖୁଥିବା ଲୋକକୁ ଏ ରୋଗ ହୋଇପାରେ ।

## କେଉଁ ପ୍ରକାର ଏଡ୍‌ସ ରୋଗୀଠାରୁ ରୋଗ ସୁସ୍ଥ ଲୋକକୁ ଡେଇଁଥାଏ

★ ରକ୍ତରେ ଏଚ୍.ଆଇ.ଭି. ଭୂତାଣୁ ଥାଇ ବାହାରକୁ ସୁସ୍ଥ ଦିଶୁଥିବା ଲୋକମାନେ ।

★ ଓଜନ କମିବା, ଦୁର୍ବଳ ଲାଗିବା, ଝାଡ଼ା, କାଶ ଇତ୍ୟାଦି ଲକ୍ଷଣ ଥିବା ଏଡ୍‌ସ ରୋଗୀମାନେ ।

★ ରକ୍ତରେ ଏଚ୍.ଆଇ.ଭି. ଭୂତାଣୁ ଥିବା ଗର୍ଭବତୀ ମହିଳାମାନେ ।

## ଏଡ୍‌ସ ରୋଗର ଲକ୍ଷଣ

ଏଡ୍‌ସ ରୋଗୀର ଲକ୍ଷଣ ବହୁ ପ୍ରକାର ହୋଇଥାଏ । ଏହା ଶରୀରର ପ୍ରତ୍ୟେକ ଅଙ୍ଗକୁ ଆକ୍ରାନ୍ତ କରୁଥିବାରୁ ସବୁ ସାଂଘାତିକ ରୋଗ ନିର୍ଣ୍ଣୟ କଲାବେଳେ ଡାକ୍ତରମାନେ ଏଡ୍‌ସ ରୋଗକୁ ମନେ ପକାଇଥାନ୍ତି । ଠିକ୍ ଭାବରେ ଅନୁମାନ କରି ନ ପାରିଲେ ଏହି ରୋଗ ଚିହ୍ନଟ ହୋଇ

ପାରେ ନାହିଁ । ଏତ୍‌ସ ରୋଗର ପ୍ରଧାନ ଲକ୍ଷଣଗୁଡ଼ିକ ହେଲା :—

★ ଶରୀରର ଓଜନ ଅଳ୍ପଦିନ ଭିତରେ କମିଯାଏ ଓ ଅତ୍ୟଧିକ ଦୁର୍ବଳ ଲାଗେ ।

★ ବହୁଦିନ ଧରି ଜର ଲାଗି ରହେ ଓ ସାଧାରଣ ଚିକିତ୍ସାରେ ଭଲ ହୁଏ ନାହିଁ ।

★ ବହୁଦିନ ଧରି କାଶ ଲାଗି ରହେ, ଛାତିରେ ଯନ୍ତ୍ରଣା ହୁଏ, ନିଃଶ୍ୱାସ ପ୍ରଶ୍ୱାସ ନେବାରେ କଷ୍ଟ ହୁଏ । ପରୀକ୍ଷା କଲେ ଯକ୍ଷ୍ମା ବା ନିମୋନିଆ ହୋଇଥିବାର ଜଣାଯାଏ ମାତ୍ର ଚିକିତ୍ସାରେ ସୁଫଳ ମିଳେ ନାହିଁ ।

★ ପେଟ ଗଣ୍ଡଗୋଳ, ବଦହଜମି, ଝାଡ଼ା ଇତ୍ୟାଦି ମାସ ମାସ ଧରି ଲାଗିରହେ ଓ ସାଧାରଣ ଔଷଧପତ୍ରରେ ଭଲ ହୁଏ ନାହିଁ ।

★ ଶରୀରରେ ଥିବା ଲସିକା ଗ୍ରନ୍ଥିଗୁଡ଼ିକ ଫୁଲି ଦରଜ ହୁଏ ।

★ ଚର୍ମରେ ଲାଲ ଲାଲ ଦାଗ ସବୁ ହୋଇ ଚର୍ମ କ୍ୟାନ୍‌ସର୍ ହେବାର ସମ୍ଭାବନା ଥାଏ । ଏହାବ୍ୟତୀତ ଅନ୍ୟାନ୍ୟ

ଚର୍ମରୋଗ ଯାଦୁ ଅଳତିରୋଗ ଇତ୍ୟାଦି ବହୁପରିମାଣରେ ହୋଇଥାଏ ଓ ସହଜରେ ଭଲ ହୁଏ ନାହିଁ । ମସ୍ତିଷ୍କ ଓ ସ୍ନାୟୁଜନିତ କେତେକ ଲକ୍ଷଣ ଯଥା- ମୁଣ୍ଡ ଗୋଳମାଳ ଲାଗିବା, ସବୁକଥା ଭୁଲିଯିବା, ମୁଣ୍ଡ ବିନ୍ଧା ଲାଗିରହିବା ଇତ୍ୟାଦି ଏଡ୍‌ସ ରୋଗର ପ୍ରଧାନ ଲକ୍ଷଣ ହୋଇପାରେ । ମସ୍ତିଷ୍କ ପ୍ରଦାହ ହୋଇ ରୋଗୀ ଅଚେତ ହୋଇ ମୃତ୍ୟୁ ମୁଖରେ ପଡ଼ିପାରେ ।

★ ଏହା ବ୍ୟତୀତ ଏଡ୍‌ସ ରୋଗ ଉପଦଂଶ ଗନୋରିଆ ଓ ଅନ୍ୟାନ୍ୟ ଯୌନ ରୋଗମାନଙ୍କ ସହିତ ଜଡ଼ିତ ହେବାର ସମ୍ଭାବନା ଅଧିକ ହୋଇଥାଏ ।

## ଏଡ୍‌ସ ରୋଗ ଚିହ୍ନଟ କରାଯାଏ କିପରି ?

★ ଶରୀରର ସବୁ ଅଂଗକୁ ଆକ୍ରାନ୍ତ କରୁଥିବା ଏଡ୍‌ସ ରୋଗ ପ୍ରଥମରେ ଲକ୍ଷଣଗୁଡ଼ିକରୁ ସନ୍ଦେହ କରାଯାଇଥାଏ ।

★ ରୋଗ ସନ୍ଦେହ କରାଗଲେ ରୋଗୀର ରକ୍ତ ପରୀକ୍ଷା କରାଯାଇଥାଏ ।

## ଏଡ୍‌ସ ରୋଗ ପାଇଁ ରକ୍ତ ପରୀକ୍ଷା :

ଏଡ୍‌ସ ରୋଗ ସନ୍ଦେହ କରାଯାଉଥିବା ରୋଗୀକୁ ଡାକ୍ତରମାନେ ତାର ରୋଗ ବିଷୟରେ ସୂଚନା ଦେଇ ଓ ତାର ଅନୁମତି ନେଇ ତାର ଶିରାରୁ ଦୁଇ ମିଲିଲିଟର ରକ୍ତ ବିଶୋଧିତ ଛୁଞ୍ଚି ସାହାଯ୍ୟରେ ସଂଗ୍ରହ କରିଥାନ୍ତି । ଏହି ରକ୍ତ ପରୀକ୍ଷା ଦୁଇଗୋଟି ସ୍ତରରେ ହୋଇଥାଏ ।

★ ପ୍ରଥମ ରକ୍ତ ପରୀକ୍ଷାଟିର ନାମ ହେଲା ଏଲିସା ଟେଷ୍ଟ ।

★ ଦ୍ୱିତୀୟ ରକ୍ତ ପରୀକ୍ଷାଟି ହେଲା ଓ୍ୱେଷ୍ଟର୍ଣ୍ଣ ବ୍ଲଟ ଟେଷ୍ଟ ।

ପ୍ରଥମରେ ରକ୍ତର ଏଲିସା ଟେଷ୍ଟ କରାଯାଏ । ଏହା ଅନ୍ୟୂନ ତିନିଥର ଅସ୍ତିବାଚକ ହେଲେ ଓ୍ୱେଷ୍ଟର୍ଣ୍ଣ ବ୍ଲଟ ଟେଷ୍ଟ ପାଇଁ ବାହାରକୁ ପଠାଯାଇଥାଏ । ଏହି ଦ୍ୱିତୀୟ ପରୀକ୍ଷାଟି ବ୍ୟୟସାପେକ୍ଷ ହୋଇ ଥିବାରୁ ଓ ଏହା ଓଡ଼ିଶାରେ ହୋଇ ପାରୁ ନ ଥିବାରୁ ରକ୍ତ ଓଡ଼ିଶା ବାହାରେ ଥିବା ଯେ କୌଣସି ଏଡ୍‌ସ ଚିହ୍ନଟ ସେଣ୍ଟରକୁ ପଠାଯାଇଥାଏ । ଅଧୁନା ଏହି ପରୀକ୍ଷା କଲିକତା, ଦିଲ୍ଲୀ, ମୁମ୍ବାଇ, ଚେନ୍ନାଇ,

ପୁଣେ ପ୍ରଭୃତି ଏଡ୍‌ସ ଚିହ୍ନଟ ସେଣ୍ଟରରେ କରାଯିବାର ବ୍ୟବସ୍ଥା ଅଛି ।

ରକ୍ତର ଓ୍ୱେଷ୍ଟର୍ଣ୍ଣ ବ୍ଲଟ ପରୀକ୍ଷା ଯଦି ତିନିଥର ଅସ୍ତିବାଚକ ହୁଏ ତେବେ ରୋଗୀର ଏଡ୍‌ସ ରୋଗ ନିଶ୍ଚିତ ଭାବେ ହୋଇଛି ବୋଲି ଧରାଯାଏ ।

ଓଡ଼ିଶାର ପ୍ରତି ମେଡ଼ିକାଲ କଲେଜ, ଭୁବନେଶ୍ୱର ଓ ସଦର ମହକୁମା ଗୁଡ଼ିକରେ ଏଡ୍‌ସ ରୋଗ ପାଇଁ ରକ୍ତ ଟଣା ଯାଇଥାଏ ଓ ଏଲିସା ପରୀକ୍ଷା କରାଯାଇଥାଏ । ଡାକ୍ତରଖାନା ବାହାରେ ଘରୋଇ ଭାବରେ କେତେକ ସ୍ଥାନରେ ରକ୍ତର ଏଲିସା ପରୀକ୍ଷା ହେବାର ସୁବିଧା ଅଛି ।

ଏସ୍.ସି.ବି. ମେଡ଼ିକାଲ କଲେଜର ଚର୍ମ, ଯୌନ, କୁଷ୍ଠ ଓ ଏଡ୍‌ସ ରୋଗ ବିଭାଗରେ ପ୍ରତି ଗୁରୁବାର ଦିନ ଏଡ୍‌ସ ରୋଗ ନିର୍ଣ୍ଣୟ ପାଇଁ ରକ୍ତ ସଂଗ୍ରହ କରାଯାଇଥାଏ । ରୋଗୀଠାରୁ କେବଳ ଥରକ ପାଇଁ ରକ୍ତ ସଂଗ୍ରହ କରାଯାଇଥାଏ । ରୋଗୀକୁ ତାର ଏଡ୍‌ସ ରୋଗର ରକ୍ତ ରିପୋର୍ଟ ମିଳିବାର ନିୟମ ଓ ବ୍ୟବସ୍ଥା ସରକାରଙ୍କ ତରଫରୁ ଏ ଯାବତ୍ କରାଯାଇନାହିଁ ।

## ଏଡ୍‌ସ ଭୂତାଣୁର ଶରୀର ଉପରେ ପ୍ରଭାବ :

ଏଡ୍‌ସ ରୋଗର ଭୂତାଣୁ ଶରୀରରେ ପ୍ରବେଶ କଲା ପରେ ରକ୍ତରେ ଥିବା ଶ୍ୱେତରକ୍ତକଣିକାକୁ ଆକ୍ରମଣ କରିଥାଏ । ଆମ ଶରୀରରେ ରକ୍ତରେ ଥିବା ଶ୍ୱେତରକ୍ତକଣିକା ଗୁଡ଼ିକର ପ୍ରକାରଭେଦ ଅଛି । ତନ୍ମଧ୍ୟରୁ ଗୋଟିଏ ପ୍ରକାରର ଶ୍ୱେତରକ୍ତକଣିକା ହେଲା ଲିମ୍ଫୋସାଇଟ୍ । ଏଇ ଲିମ୍ଫୋସାଇଟମାନଙ୍କର ପୁଣି ପ୍ରକାରଭେଦ ଅଛି । ଏଇ ପ୍ରକାରଭେଦ ଅନୁସାରେ ଏଡ୍‌ସ ରୋଗ ପାଇଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଲିମ୍ଫୋସାଇଟ୍ ହେଲା ଟି-୪ ଲିମ୍ଫୋସାଇଟ୍ । ଏହି ପ୍ରକାର ଲିମ୍ଫୋସାଇଟମାନେ ଶରୀରର ରୋଗ ପ୍ରତିରୋଧକାରୀ ଶକ୍ତିକୁ ସବଳ କରିଥାନ୍ତି । ଏଇ ପ୍ରକାର ଲିମ୍ଫୋସାଇଟମାନେ କୌଣସି କାରଣରୁ ନଷ୍ଟ ହୋଇଗଲେ କିମ୍ବା ନିର୍ଦ୍ଧାରିତ ସଂଖ୍ୟାରୁ କମ୍ ସଂଖ୍ୟାରେ ରକ୍ତରେ ରହିଲେ ମଣିଷର ରୋଗ ପ୍ରତିରୋଧକାରୀ ଶକ୍ତି କମିଯାଏ । ଫଳରେ ଲୋକଟି ବାରମ୍ବାର ବିଭିନ୍ନ ପ୍ରକାର ରୋଗରେ ଆକ୍ରାନ୍ତ ହୋଇଥାଏ ।

ଏଡ୍‌ସ ରୋଗର ଭୂତାଣୁମାନେ ଟି-୪

ଲିମ୍ଫୋସାଇଟ୍‌ମାନଙ୍କୁ ଆକ୍ରମଣ କରି ନଷ୍ଟ କରିଦିଅନ୍ତି । ଫଳରେ ଏମାନଙ୍କ ସଂଖ୍ୟା କମିବାକୁ ଲାଗେ । ଜଣେ ସୁସ୍ଥ ଲୋକର ପ୍ରତି ମିଲି ଲିଟର ରକ୍ତରେ ୭୦୦ ରୁ ୮୦୦, ଟି-୪ ଲିମ୍ଫୋସାଇଟ୍ ରହିବା କଥା । ସାଂଘାତିକ ଏଡ୍‌ସ ରୋଗରେ ଏହି ସଂଖ୍ୟା କମି କମି ୧୦୦ ରୁ ୫୦ ପର୍ଯ୍ୟନ୍ତ ଆସିଥାଏ । ଏହା ଫଳରେ ଶରୀରରୁ କ୍ରମେ ରୋଗ ପ୍ରତିରୋଧକାରୀ ଶକ୍ତି ଲୋପ ପାଇଥାଏ । ରୋଗ ପ୍ରତିରୋଧକାରୀ ଶକ୍ତି ନଷ୍ଟ ହୋଇଯାଉଥିବାରୁ ଏଡ୍‌ସ ରୋଗରେ ଅନ୍ୟାନ୍ୟ ଜୀବାଣୁ, ଭୂତାଣୁ ଜନିତ ଓ ଫଙ୍ଗସ୍ ଜାତୀୟ ରୋଗ ପ୍ରଭୃତି ସହଜରେ ହୋଇଥାଏ ।

## ଏଡ୍‌ସ ରୋଗ ଓ ଅନ୍ୟାନ୍ୟ ଯୌନବ୍ୟାଧି :

ଏଡ୍‌ସ ରୋଗ ଓ ଅନ୍ୟାନ୍ୟ ଯୌନବ୍ୟାଧି ଉଭୟଙ୍କର ସଂପର୍କ ଭାଇଭାଇର ସଂପର୍କ । ବିଭିନ୍ନ ଯୌନବ୍ୟାଧି ଭୋଗ କରୁଥିବା ରୋଗୀମାନେ ସହଜରେ ଏଡ୍‌ସ ରୋଗର ଶିକାର ହୋଇଥାନ୍ତି ।

ଯୌନବ୍ୟାଧି ସବୁ ସମୟରେ ଯୌନ ସମ୍ପର୍କ ଦ୍ୱାରା ସୃଷ୍ଟି ହୋଇଥାଏ ଓ ସେମାନଙ୍କ ମଧ୍ୟରୁ ଅଧିକାଂଶ ରୋଗ ପ୍ରଥମରେ ପୁରୁଷ ବା ସ୍ତ୍ରୀର ଜନନେନ୍ଦ୍ରିୟରେ କ୍ଷତ ସୃଷ୍ଟି କରିଥାନ୍ତି । ଏହି

କ୍ଷତ ଦ୍ୱାରା ଏଡ୍‌ସ ରୋଗର ଭୂତାଣୁ ସହଜରେ ରକ୍ତରେ ପ୍ରବେଶ କରିଥାଏ ।

ପୃଥିବୀର ବହୁ ସ୍ଥାନରେ ଥିବା ଯୌନବ୍ୟାଧି କ୍ଲିନିକ୍‌ଗୁଡ଼ିକରେ ହୋଇଥିବା ଏଲିସା ପରୀକ୍ଷାର ପରିସଂଖ୍ୟାନରୁ ଜଣାଯାଇଛି ଯେ ଯୌନବ୍ୟାଧି ଓ ଏଡ୍‌ସ ରୋଗ ଉଭୟ ଓତଃପ୍ରୋତ ଭାବରେ ଜଡ଼ିତ । ଯୌନବ୍ୟାଧିମାନଙ୍କ ମଧ୍ୟରେ ଜନନେନ୍ଦ୍ରିୟରେ କ୍ଷତ ସୃଷ୍ଟି କରୁଥିବା ରୋଗମାନେ ହେଲେ ସିଫିଲିସ୍, ଗନୋରିୟା, ସାନ୍‌କ୍ରଏଡ୍ ଓ ହରପିସ୍ ଇତ୍ୟାଦି । ଏଇ ରୋଗମାନଙ୍କର କ୍ଷତଗୁଡ଼ିକର ଏଡ୍‌ସ ରୋଗର ଭୂତାଣୁକୁ ଧରି ରଖିବା ଶକ୍ତି ଅଧିକ ।

ଯୌନବ୍ୟାଧି ଭୋଗ କରୁଥିବା ରୋଗୀକୁ ଏଚ୍.ଆଇ.ଭି. ଭୂତାଣୁ ଆକ୍ରମଣ କଲେ ଯୌନରୋଗର ଲକ୍ଷଣ ତଥା କ୍ଷତ ସାଂଘାତିକ ଆକାର ଧାରଣ କରିଥାଏ । ଜନନେନ୍ଦ୍ରିୟରେ ହୋଇଥିବା ସାଧାରଣ ଯୌନକ୍ଷତ ବିଷାକ୍ତ ହୋଇ ପାଖ ଆଖରେ ଥିବା ଅନ୍ୟାନ୍ୟ ସ୍ଥାନ ଯଥା ପରିସ୍ରାଦ୍ୱାର, ମଳଦ୍ୱାର, ଯୌନାଙ୍ଗ ମଧ୍ୟରେ ବଡ଼ ବଡ଼ କ୍ଷତ ସୃଷ୍ଟି କରିଥାଏ ।

ଜନନେନ୍ଦ୍ରିୟରେ ଛତ୍ରକ (ଫଙ୍ଗସ୍), ଭାତୁଡ଼ି,

ଟ୍ରାଇକୋମୋନାସ୍ ପ୍ରଭୃତି ରୋଗ ଏଡ୍‌ସ ହେଲେ ବୃଦ୍ଧି ପାଇଥାଏ । ବହୁ ସମୟରେ ଏହିପ୍ରକାର ପରିସ୍ଥିତି ଏଡ୍‌ସ ରୋଗକୁ ସନ୍ଦେହ କରିବା ପାଇଁ ଡାକ୍ତରମାନଙ୍କୁ ସାହାଯ୍ୟ କରିଥାଏ ।

## ନାରୀ ଓ ଏଡ୍‌ସରୋଗ :

ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥା ରିପୋର୍ଟରୁ ଜଣାଯାଇଛି କୋଡ଼ିଏରୁ ତିରିଶଲକ୍ଷ ଏଡ୍‌ସ ରୋଗ ଭୋଗକରୁଥିବା ମା' ଓ ଛୁଆଙ୍କ ମଧ୍ୟରୁ ଦଶଲକ୍ଷ କେବଳ ଶିଶୁ ଓ କିଶୋର । ୧୯୯୦ ମସିହାରେ ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥା ତରଫରୁ ନାରୀମାନଙ୍କର ଏଡ୍‌ସ ରୋଗ ସମ୍ବନ୍ଧରେ ସଚେତନତା ସୃଷ୍ଟି ପାଇଁ ବହୁଳ ପ୍ରଚାର ପ୍ରସାର କରାଯାଇଥିଲା । ଜଣାଯାଏ ଦଶବର୍ଷ ତଳେ ଏଡ୍‌ସ ସଂକ୍ରମଣ ବିଶେଷତଃ ପୁରୁଷମାନଙ୍କ ମଧ୍ୟରେ ସୀମିତ ଥିଲା ଓ ଏହା ଅଶୀ ପ୍ରତିଶତ ଥିଲା । ୧୯୮୦ ରୁ ୧୯୯୧ ମଧ୍ୟରେ ସଂକ୍ରମିତ ପୁରୁଷମାନଙ୍କ ସଂଖ୍ୟା ୯୦ ଗୁଣ ବୃଦ୍ଧି ପାଇଥିବା ବେଳେ ନାରୀମାନଙ୍କ ସଂଖ୍ୟା ୨୨୫ ଗୁଣ ବୃଦ୍ଧି ପାଇଥିଲା । ଅନ୍ୟ କେତେକ ରିପୋର୍ଟରୁ ଜଣାଯାଏ ପ୍ରତିବର୍ଷ ତିରିଶହଜାର ଗର୍ଭବତୀ ସ୍ତ୍ରୀ ଏଡ୍‌ସ ଭୂତାଣୁ ଦ୍ୱାରା ଆକ୍ରାନ୍ତ ହେଉଛନ୍ତି ।

# ନାରୀମାନେ ଏଡ୍‌ସ ରୋଗର ଶିକାର ହୁଅନ୍ତି କିପରି ?

ନାରୀମାନେ ଏଡ୍‌ସ ରୋଗରେ ଆକ୍ରାନ୍ତ ପୁରୁଷ ସହିତ ଯୌନସଂପର୍କ ରଖିଲେ ସେମାନଙ୍କୁ ଏଡ୍‌ସ ରୋଗ ହୋଇଥାଏ ।

ଯେଉଁ ନାରୀମାନେ ଆଗରୁ ଯୌନରୋଗାକ୍ରାନ୍ତ ସେମାନଙ୍କର ଏଡ୍‌ସ ରୋଗ ସହଜରେ ହୋଇଥାଏ ।

ଯେଉଁ ନାରୀମାନେ ରୂପ ବ୍ୟବସାୟରେ ଲିପ୍ତ ସେମାନେ ବହୁପୁରୁଷଙ୍କ ସାଙ୍ଗରେ ଯୌନସଂପର୍କ ରଖିବା ଦ୍ୱାରା ଏଡ୍‌ସ ରୋଗରେ ଆକ୍ରାନ୍ତ ହେବାର ସମ୍ଭାବନା ଅଧିକ ।

ଯେଉଁ ନାରୀମାନେ ପିଲାଜନ୍ମ କରିବା ପାଇଁ ଅନ୍ୟପୁରୁଷର ଶୁକ୍ର ବ୍ୟବହାର କରିଥାନ୍ତି ସେମାନଙ୍କର ଏଡ୍‌ସ ରୋଗ ହେବାର ମଧ୍ୟ ସମ୍ଭାବନା ଥାଏ ।

ନାରୀର ପ୍ରତିମାସରେ ହେଉଥିବା ଋତୁସ୍ରାବ ଜନିତ ଜନନେନ୍ଦ୍ରିୟର କ୍ଷତ ଏଡ୍‌ସ ଭୂତାଣୁକୁ ଆକ୍ରମଣ କରିବାରେ ସୁଯୋଗ ଦେଇଥାଏ ।

ସନ୍ତାନ ଜନ୍ମ ସମୟରେ ନାରୀମାନଙ୍କୁ ଡାକ୍ତରଖାନାରେ ସମୟ ସମୟରେ ସାଲାଇନ୍, ରକ୍ତ, ରକ୍ତଜାତ ପଦାର୍ଥ ନେବାକୁ ପଡ଼ିଥାଏ । ଛୋଟ ବଡ଼ ଅପରେସନ ମଧ୍ୟ ପିଲାଜନ୍ମ ପାଇଁ କରାଯାଇଥାଏ । ଏଥିପାଇଁ ବିଭିନ୍ନ ଯନ୍ତ୍ରପାତି, ଛୁରୀ, କତୁରୀ, ବ୍ଲେଡ଼, ଛୁଞ୍ଚି, ନାଇଲନ୍‌ର ସୂତା ଇତ୍ୟାଦି ମଧ୍ୟ ବ୍ୟବହାର କରାଯାଇଥାଏ । ଏ ସମସ୍ତ ଯନ୍ତ୍ରପାତି ରକ୍ତ, ସାଲାଇନ ଇତ୍ୟାଦି ଏଡ୍‌ସ ଜୀବାଣୁ ଯୁକ୍ତ ହୋଇଥିଲେ ସନ୍ତାନଜନ୍ମ ସମୟରେ ହିଁ ମା' ମାନେ ଡାକ୍ତରଖାନାରୁ ଏଡ୍‌ସ ରୋଗର ଜୀବାଣୁ ଧରି ଘରକୁ ଫେରି ଥାଆନ୍ତି ।

ସେହିପରି ଜନ୍ମନିୟନ୍ତ୍ରଣ ଅପରେସନ ବା ଜନ୍ମନିରୋଧକ କପରଟି ଇତ୍ୟାଦି ଯୋଗୁ ମଧ୍ୟ ଡାକ୍ତରଖାନାରୁ ଏଡ୍‌ସ ଜୀବାଣୁ ସଂକ୍ରମଣ ହେବାର ସମ୍ଭାବନା ଥାଏ । ଏତଦ୍‌ବ୍ୟତୀତ ଘରେ ଏଡ୍‌ସ ରୋଗାକ୍ରାନ୍ତ ସ୍ୱାମୀଠାରୁ, ବାହାରେ ସେବା ବୃତ୍ତିରେ ନିୟୋଜିତ ଥିବା ସ୍ତ୍ରୀମାନେ ଏଡ୍‌ସରୋଗୀମାନଙ୍କଠାରୁ, ଡାକ୍ତରୀବୃତ୍ତିରେ ଥିବା ନାରୀ ଅଜାଣତରେ ଓ ଅସାବଧାନତାରେ ଡାକ୍ତରୀ ଯନ୍ତ୍ରପାତି ଦ୍ୱାରା କ୍ଷତ ସୃଷ୍ଟିହେଲେ ଏଡ୍‌ସ ରୋଗ ହେବାର ମଧ୍ୟ ସମ୍ଭାବନା ଥାଏ ।

## ଏଡ୍‌ସରୋଗ ଓ ଶିଶୁ :

ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥା ରିପୋର୍ଟରୁ ଜଣାଯାଇଛି ତିରିଶଲକ୍ଷ ଏଡ୍‌ସ ରୋଗ ଭୋଗ କରୁଥିବା ନାରୀମାନଙ୍କ ମଧ୍ୟରୁ କେବଳ ଦଶଲକ୍ଷ ହେଉଛନ୍ତି ଆଫ୍ରିକା ମହାଦେଶର ନାରୀ । ଏହି ରିପୋର୍ଟ ଅନୁସାରେ ଆଫ୍ରିକାର ଅଶୀହଜାର ନବଜାତ ଶିଶୁ ପ୍ରତିବର୍ଷ ଏଡ୍‌ସ ରୋଗରେ ଆକ୍ରାନ୍ତ ହେଉଛନ୍ତି । ଏହା ମଧ୍ୟ ପ୍ରମାଣିତ ହୋଇସାରିଛି ଯେ ମାଆମାନେ ଏଡ୍‌ସ ରୋଗ ଭୋଗ କରୁଥିଲେ ସେମାନଙ୍କଠାରୁ ଜନ୍ମ ନେଉଥିବା ଶିଶୁମାନଙ୍କ ମଧ୍ୟରୁ ୨୫ ରୁ ୪୦ ପ୍ରତିଶତ ଶିଶୁ ଏଡ୍‌ସ ଭୂତାଣୁ ଦ୍ୱାରା ସଂକ୍ରମିତ ହୋଇଥାନ୍ତି । ଏହି ହତଭାଗ୍ୟ ଶିଶୁମାନଙ୍କ ମଧ୍ୟରୁ ପଚାଶ ପ୍ରତିଶତ ଶିଶୁ ସେମାନଙ୍କର ଦ୍ୱିତୀୟ ଜନ୍ମଦିବସ ପୂର୍ବରୁ ମୃତ୍ୟୁବରଣ କରିଥାନ୍ତି ।

## ଶିଶୁମାନେ ଏଡ୍‌ସ ରୋଗରେ ଆକ୍ରାନ୍ତ ହୁଅନ୍ତି କିପରି ?

ଶିଶୁଟିଏ ଏଡ୍‌ସ ରୋଗାକ୍ରାନ୍ତ ମା' ଠାରୁ ମା'ର ପେଟ ଭିତରେ, ଜନ୍ମ ସମୟରେ ଓ ଜନ୍ମର ପରେ ପରେ ଏଡ୍‌ସ ରୋଗ ଗ୍ରହଣ କରିଥାଏ ।

କେତେକ ଶିଶୁ ଓ ବାଳକ ବାଳିକାମାନେ ଏଡ୍‌ସ ରୋଗ ଭୋଗକରୁଥିବା ଲୋକଙ୍କର ବିକାରଗ୍ରସ୍ତ ଯୌନକ୍ରିୟାର ଶିକାର ହୋଇ ଏଡ୍‌ସ ରୋଗରେ ଆକ୍ରାନ୍ତ ହୋଇଥାନ୍ତି ।

ଶିଶୁମାନେ ଝାଡ଼ା, ଜର ପ୍ରଭୃତି ସାଧାରଣ ରୋଗରେ ଆକ୍ରାନ୍ତ ହୋଇ ଡାକ୍ତରଖାନାରେ ଭର୍ତ୍ତି ହୋଇଥାନ୍ତି । ସାଲାଇନ ଓ ଅନ୍ୟାନ୍ୟ ଔଷଧ ଶିରାବାଟେ ଦେବାକୁ ପଡ଼ିଥାଏ । କେତେକ ଶିଶୁ ରକ୍ତହୀନତା ଓ ରକ୍ତରୋଗ ହିମୋଫିଲିଆର ଚିକିତ୍ସା ପାଇଁ ଶିରାରେ ବାରମ୍ବାର ରକ୍ତ ଗ୍ରହଣ କରିଥାନ୍ତି । ଏହି ରକ୍ତ, ସାଲାଇନ୍ ଛୁଞ୍ଚି ପ୍ରଭୃତି କୌଣସି କାରଣରୁ ଏଡ୍‌ସ ଭୂତାଣୁଯୁକ୍ତ ହୋଇଥିଲେ ଶିଶୁମାନେ ପରବର୍ତ୍ତୀ କାଳରେ ଏଡ୍‌ସ ରୋଗରେ ଆକ୍ରାନ୍ତ ହୋଇଥାନ୍ତି ।

## ଏଡ୍‌ସ ରୋଗ ଭୋଗ କରୁଥିବା ଶିଶୁର ଲକ୍ଷଣ:-

★ ଏଡ୍‌ସ ଭୂତାଣୁ ଦ୍ୱାରା ଆକ୍ରାନ୍ତ ଶିଶୁ ସହଜରେ ଜୀବାଣୁ ଓ ଭୂତାଣୁ ରୋଗରେ ଆକ୍ରାନ୍ତ ହୋଇ ଜର, ଝାଡ଼ା, କାଶ, କାନପଚା, ଗାଲୁଆ ଓ ପାଟି ଅଳତି ଇତ୍ୟାଦି ରୋଗ ଭୋଗ କରିଥାଏ ।

★ ପିଲାର ବିଭିନ୍ନ ଚର୍ମରୋଗ ଯଥା- କାଛୁ, କୁଣ୍ଡିଆ ଛତ୍ରକ, ଘା’ ଘାଉଡ଼, ବିଶିଫୋଟକା, ବଡ଼ା ଓ

ଏକଜିମା ରୋଗ ଲାଗିରହେ ।

★ ଅଧିକାଂଶ ସଂକ୍ରାମକ ରୋଗ ସହଜରେ ଆକ୍ରମଣ କରିଥାଏ । ଯକ୍ଷ୍ମାରୋଗ ମଧ୍ୟ ବହୁ ଶିଶୁଙ୍କୁ ହେବାର ଦେଖାଯାଏ ।

★ ଶିଶୁର ସ୍ୱାସ୍ଥ୍ୟହାନୀ ଘଟିଥାଏ, ଓଜନ କମିଯାଏ । ଚର୍ମ ତଳର ଚର୍ବି ତରଳି ଯିବାରୁ ଚର୍ମ ଧୂଡ୍ ଧୂଡ୍ ହୋଇଯାଏ ।

★ ଶିଶୁର ଯକୃତ, ପ୍ଲିହା, ଲସିକା ଗ୍ରନ୍ଥି ସବୁ ଫୁଲି ବଢ଼ିଯାଏ ।

ମୋଟ ଉପରେ ଏଡ୍‌ସ ରୋଗାକ୍ରାନ୍ତ ଶିଶୁ, ରୋଗ ହେବାଠାରୁ ପ୍ରାୟ ଦୁଇବର୍ଷ ମଧ୍ୟରେ ମୃତ୍ୟୁ ବରଣ କରିଥାଏ । ଦୁଇବର୍ଷ ପରେ ଶିଶୁ ବଞ୍ଚି ରହିଲେ ମଧ୍ୟ ଅନ୍ୟାନ୍ୟ ଆନୁସଂଗିକ ରୋଗରେ ତାର ମୃତ୍ୟୁ ହୋଇପାରେ ।

.ପରୀକ୍ଷାରୁ ଜଣାଯାଇଛି ଶିଶୁ ଓ ବାଳକବାଳିକାମାନଙ୍କର ଏଡ୍‌ସ ରୋଗ ସାଧାରଣ ବୟସ୍କ ଲୋକଙ୍କଠାରୁ ଅଧିକ ମାତ୍ରାରେ ହୋଇଥାଏ ଓ ଏମାନେ ରୋଗ ଚିହ୍ନଟ ହେବା ପରଠାରୁ ଚଉଦ ମାସ ମାତ୍ର ବଞ୍ଚି ରହି ପାରନ୍ତି ।

# ଏଡ୍‌ସ ରୋଗର୍ ଚିକିତ୍ସା :

ଏଡ୍‌ସ ରୋଗୀର ରକ୍ତ ପରୀକ୍ଷା ରୋଗକୁ ଚିହ୍ନଟ କରିଥାଏ । ରୋଗ ଚିହ୍ନଟ ହୋଇ ସାରିବା ପରେ ପ୍ରଧାନ କଥା ହେଲା ରୋଗର ଚିକିତ୍ସା । ଲକ୍ଷଣଯୁକ୍ତ ରୋଗୀ ଓ ଲକ୍ଷଣ ନ ଥିବା ରୋଗୀ ଉଭୟଙ୍କ ଦେହରେ ଏଡ୍‌ସ ଭୂତାଣୁମାନେ ରହି ରୋଗ ସୃଷ୍ଟି କରିଥାନ୍ତି ।

ଏଡ୍‌ସ ରୋଗର ସଠିକ୍ ଚିକିତ୍ସାର ପ୍ରଣାଳୀ ଏ ଯାବତ୍ ପ୍ରସ୍ତୁତ ହୋଇ ପାରି ନାହିଁ । ଏଡ୍‌ସ ଟୀକାର ଉଦ୍ଭାବନ ମଧ୍ୟ ଏ ପର୍ଯ୍ୟନ୍ତ ହୋଇ ପାରି ନାହିଁ । ଯାହା କିଛି ଚିକିତ୍ସା ଏଡ୍‌ସ ରୋଗ ପାଇଁ କରାଯାଉଛି ତାହା ହେଲା ଆନୁସଙ୍ଗିକ ରୋଗମାନଙ୍କର ଚିକିତ୍ସା ଓ ରୋଗର ଲକ୍ଷଣ କମାଇବା ଓ ରୋଗୀର ମୃତ୍ୟୁକୁ ବିଳମ୍ବ କରାଇବାର ଚିକିତ୍ସା ।

★ ସାଧାରଣ ଚିକିତ୍ସା ଭିତରେ ରୋଗୀର ସୁଷମ ଖାଦ୍ୟ, ବିଶ୍ରାମ, ଯୋଗ, ବ୍ୟାୟାମ ଓ ନିଶାଦ୍ରବ୍ୟ ସେବନ ସଂପୂର୍ଣ୍ଣ ଭାବରେ ବନ୍ଦ କରିବା ହେଲା ପ୍ରଧାନ କଥା ।

★ ଅନ୍ୟାନ୍ୟ ରୋଗଗୁଡ଼ିକ କିପରି ନ ହେବ ସେଥିପ୍ରତି ଦୃଷ୍ଟିଦେବା ଆବଶ୍ୟକ । ରୋଗୀ ଅନ୍ୟାନ୍ୟ

ଡିଆଁରୋଗ ଭୋଗ କରୁଥିବା ରୋଗୀମାନଙ୍କଠାରୁ ଦୂରେଇ ରହିବା ଉଚିତ୍ । କୌଣସି ସଂକ୍ରାମକ ରୋଗ ହୋଇଗଲେ ସଙ୍ଗେ ସଙ୍ଗେ ଡାକ୍ତରଙ୍କ ପରାମର୍ଶ ନେବା ଦରକାର ।

ଏଡ୍‌ସ ରୋଗ ପାଇଁ ବ୍ୟବହାର କରାଯାଉଥିବା ପ୍ରଧାନ ଔଷଧର ନାମ ହେଲା ଜିଡୋଭୁଡିନ୍ । ଏହି ଔଷଧ ଭାରତବର୍ଷରେ ମିଳୁ ନ ଥିଲା । ବର୍ତ୍ତମାନ ଏ ଔଷଧ ଆମ ଭାରତବର୍ଷରେ ମିଳିଲାଣି । କିନ୍ତୁ ଏ ଔଷଧ ବେଶୀ ଦିନ ଧରି ବ୍ୟବହାର କଲେ ତାର କୁ-ପ୍ରଭାବ ମଧ୍ୟ ଶରୀର ଉପରେ ପଡ଼େ । ତେଣୁ ଡାକ୍ତରଙ୍କୁ ପରାମର୍ଶ କରି ଔଷଧ ବ୍ୟବହାର କରିବା ଉଚିତ । ଏ ଔଷଧର ଦାମ୍ ବହୁତ ବେଶୀ ।

ବର୍ଷ ବର୍ଷ ଧରି ଏପରି ଏକ ଔଷଧ ଚିକିତ୍ସା ଆମ ଭାରତବର୍ଷ ପରି ବିକାଶଶୀଳ ଦେଶରେ ସବୁ ରୋଗୀଙ୍କ ପାଇଁ ସମ୍ଭବ ନୁହେଁ ।

## ଏଡ୍‌ସ ରୋଗର ପରିଣତି :

ସାଧାରଣ ଭାବରେ ଜଣେ ଲକ୍ଷଣଯୁକ୍ତ ଏଡ୍‌ସ ରୋଗୀ ତାର ରୋଗ ଚିହ୍ନଟ ହୋଇ ସାରିବା ପରେ ଦେଢ଼ବର୍ଷରୁ ଦୁଇବର୍ଷ ପର୍ଯ୍ୟନ୍ତ ବଞ୍ଚି ପାରନ୍ତି । ଏହି ସମୟ ଏଡ୍‌ସ ରୋଗର

ଚିକିତ୍ସା ଦ୍ୱାରା ସାମାନ୍ୟ ବଢ଼ାଯାଇପାରେ । ଏଡ୍‌ସ ରୋଗର ଭୂତାଣୁମାନଙ୍କ ଦ୍ୱାରା ଆକ୍ରାନ୍ତ ହେବାର ପାଞ୍ଚବର୍ଷ ମଧ୍ୟରେ ୨୫ରୁ ୩୦ ଶତାଂଶ ଲୋକଙ୍କଠାରେ ଏଡ୍‌ସ ରୋଗର ଲକ୍ଷଣମାନ ପ୍ରକାଶ ପାଇଥାଏ । ଦଶବର୍ଷ ସୁଦ୍ଧା ୪୦-୫୦ ପ୍ରତିଶତ ଲକ୍ଷଣ ପ୍ରକାଶ ପାଇଥାଏ ଓ କୋଡ଼ିଏ ବର୍ଷ ସୁଦ୍ଧା ୯୦ ପ୍ରତିଶତ ଲକ୍ଷଣ ପ୍ରକାଶ ପାଇଥାଏ ।

ଏଥିରୁ ଜଣାଯାଏ ଏଚ୍.ଆଇ.ଭି. ଭୂତାଣୁ ମଣିଷ ଦେହରେ ଥିବା ପ୍ରମାଣ ଥିଲେ ମଧ୍ୟ ଏହିପ୍ରକାର ରୋଗୀ ବିଶେଷ ଲକ୍ଷଣଯୁକ୍ତ ନ ହେଲେ ସହଜରେ ମୃତ୍ୟୁବରଣ କରି ନ ଥାନ୍ତି । ଦୀର୍ଘ କୋଡ଼ିଏ ବର୍ଷ ଭିତରେ ଯଦି ଜଣେ ରୋଗୀ ୯୦ ପ୍ରତିଶତ ଲକ୍ଷଣଯୁକ୍ତ ହୁଏ ତେବେ ସେଇ ରୋଗୀର ମୃତ୍ୟୁ ସୁନିଶ୍ଚିତ । ରୋଗୀ ଲକ୍ଷଣଯୁକ୍ତ ହେବାପାଇଁ ବେଳେ ବେଳେ ବହୁବର୍ଷ ଲାଗିଯାଇପାରେ ।

ଲକ୍ଷଣଯୁକ୍ତ ହେଉ ବା ନ ହେଉ ରୋଗୀର ରକ୍ତ ପରୀକ୍ଷା ଅସ୍ତିବାଚକ ହେଲେ ରୋଗୀ ସଂକ୍ରାମକ ଅବସ୍ଥାରେ ଜୀବନବ୍ୟାପୀ ରହିଥାଏ । ଏହି ଅବସ୍ଥା ଜାଣି ସାରିବାପରେ ରୋଗୀ ତା'ର ରୋଗ ଯେପରି ଅନ୍ୟଲୋକକୁ ନ ଡିଏଁ ସେଥିପ୍ରତି ଯଥେଷ୍ଟ ସାବଧାନ ହେବା ଉଚିତ । ଡାକ୍ତରମାନେ

ମଧ୍ୟ ଏହି ପ୍ରକାର ରୋଗୀକୁ ତା'ର ରୋଗ ବିଷୟରେ ତଥା ତା'ର ଦୈନନ୍ଦିନ ଚଳଣି ବିଷୟରେ ସବୁକଥା ଠିକ୍ ଠିକ୍ ଭାବରେ ବୁଝାଇଦେବା ଆବଶ୍ୟକ ।

## ଏଡ୍ସ ରୋଗୀର ବାରଣ :

ରକ୍ତ ପରୀକ୍ଷା ଅସ୍ତିବାଚକ ହୋଇଥିବା ଏଡ୍ସ ରୋଗୀମାନେ ଯୌନସଂପର୍କ ରଖିବା ଉଚିତ୍ ନୁହେଁ ।

ଏହି ପ୍ରକାର ପୁରୁଷ ରୋଗୀ ସେମାନଙ୍କର ଶୁକ୍ର ଦାନ କରିବା ଅନୁଚିତ୍ ।

ଏହି ରୋଗୀମାନେ କାହାପାଇଁ ରକ୍ତ କିମ୍ବା ରକ୍ତ ସମ୍ବନ୍ଧୀୟ ପଦାର୍ଥ ଦାନ କରିବା ମଧ୍ୟ ଅନୁଚିତ ।

ଏହି ରୋଗୀମାନେ ଅଙ୍ଗରୋପଣ ପାଇଁ କାହାକୁ ସେମାନଙ୍କର ବୃକକ, ଆଖି, ଚର୍ମ ପ୍ରଭୃତି ଶରୀରର କୌଣସି ଅଙ୍ଗ ଦାନ କରି ପାରିବେ ନାହିଁ ।

ଏମାନେ ନିଜର ବ୍ୟବହାର ଜିନିଷ ଯଥା-

ଇଂଜେକ୍ସନ୍ ଛୁଞ୍ଚି, ଖିଅର ହେବା ବ୍ଲେଡ୍, ଦାନ୍ତଘଷା ବ୍ରସ୍ ଇତ୍ୟାଦି ଅନ୍ୟ ଲୋକକୁ ବ୍ୟବହାର ପାଇଁ ଦେବା ନିଷେଧ ।

ନାରୀ ରୋଗୀମାନେ ସନ୍ତାନଧାରଣ କରିବା ଉଚିତ୍ ନୁହେଁ ।

ଏହି ପ୍ରକାର ରୋଗୀମାନେ ମଝିରେ ମଝିରେ ଡାକ୍ତରୀ ପରୀକ୍ଷା ତଥା ଡାକ୍ତର ପରାମର୍ଶ କରିବା ଉଚିତ ।

## ଏଡ୍‌ସ ରୋଗର ନିରାକରଣ :

ଯେଉଁସବୁ କାରଣ ଯୋଗୁ ଏଡ୍‌ସ ରୋଗ ହୋଇଥାଏ, ସେଇସବୁ କାରଣକୁ ପ୍ରତିରୋଧ କରିବା ଉଚିତ ।

★ ଯୌନ ସଂପର୍କ ବିଷୟରେ ଯଥେଷ୍ଟ ସଚେତନ ହେବା ଉଚିତ । ଯୌନ ଉଚ୍ଛୃଙ୍ଖଳ ଭାବ ଯୁବକଯୁବତୀମାନେ ପରିତ୍ୟାଗ କରିବା ପ୍ରଥମ କର୍ତ୍ତବ୍ୟ । ଏକ ପତ୍ନୀବ୍ରତ ଓ ଏକ ସ୍ୱାମୀବ୍ରତ ପ୍ରତ୍ୟେକ ବିବାହିତ ଦମ୍ପତ୍ତି ପାଳନ କରିବା ଉଚିତ । ଅଜଣା ଲୋକ ସହିତ ଯୌନ ସଂପର୍କ ସର୍ବଦା ବିପଜ୍ଜନକ । ସନ୍ଦେହଜନକ ପରିସ୍ଥିତିରେ ନିରୋଧ ବ୍ୟବହାର ଅତ୍ୟନ୍ତ ଜରୁରୀ ।

★ ଏଡ୍‌ସ ରୋଗର ଭୂତାଣୁ ଇଂଜେକ୍‌ସନ୍ କିମ୍ବା ରକ୍ତ ସଞ୍ଚାଳନ ମାଧ୍ୟମରେ ସହଜରେ ସୁସ୍ଥଲୋକ ଦେହରେ ପ୍ରବେଶ କରୁଥିବାରୁ ସବୁପ୍ରକାର ଇଂଜେକ୍‌ସନ୍ ମାଧ୍ୟମ ତଥା ରକ୍ତ ଓ ରକ୍ତଜାତ ପଦାର୍ଥଗୁଡ଼ିକ ଏଡ୍‌ସ ଭୂତାଣୁମୁକ୍ତ ହେବା ନିହାତି ଦରକାର ।

☆ ସବୁ ସମୟରେ ବିଶୋଧିତ ଇଂଜେକ୍‌ସନ୍ ଛୁଞ୍ଚି, ବିଶୋଧିତ ଯନ୍ତ୍ରପାତି ଓ ଭୂତାଣୁମୁକ୍ତ ରକ୍ତ ଶରୀର ପାଇଁ ଦରକାର ବେଳେ ବ୍ୟବହାର କରିବା ଉଚିତ । ଏ ସବୁ ପାଇଁ ସଚେତନ ହେବା ପ୍ରତ୍ୟେକ ଲୋକର କର୍ତ୍ତବ୍ୟ ।

☆ ସବୁ ପ୍ରକାର ନିଶାଦ୍ରବ୍ୟ ତଥା ନିଶା ଇଂଜେକ୍‌ସନ୍ ଇତ୍ୟାଦି ଆଦୌ ବ୍ୟବହାର ନ କରିବା ପାଇଁ ଶପଥ ନେବା ବିଧେୟ, ନଚେତ୍ ଏଡ୍‌ସ ପରି ମାରାତ୍ମକ ରୋଗରୁ ରକ୍ଷା ପାଇବା ସମ୍ଭବ ନୁହେଁ ।

## ଏଡ୍‌ସ ରୋଗ ବିଷୟରେ କେତେଗୁଡ଼ିଏ ଭୁଲ୍ ଧାରଣା ବର୍ଜନୀୟ :

☆ ଏଡ୍‌ସ ରୋଗ ପ୍ରଧାନତଃ ଯୌନ ସଂପର୍କ ଓ ଇଂଜେକ୍‌ସନ୍ ମାଧ୍ୟମରେ ହୋଇଥାଏ ।

☆ ଏଡ୍‌ସ ରୋଗୀ ସାଙ୍ଗରେ ରହିଲେ ବସାଉଠା କଲେ, ହାତ ମିଳାଇଲେ, ଏକାଠି ଖିଆପିଆ କଲେ, ତାର ବାସନକୁସନ ବ୍ୟବହାର କଲେ ଏଡ୍‌ସ ରୋଗ ହୋଇ ନ ଥାଏ ।

★ ଏଡ୍‌ସ ରୋଗ ମଶା ଦ୍ୱାରା ବ୍ୟାପୀ ନ ଥାଏ ।

★ ଏଡ୍‌ସ ରୋଗର ଭୂତାଣୁ କାଶ ଛିଙ୍କ ଦ୍ୱାରା ବାୟୁମଣ୍ଡଳରୁ ଆସି ସୁସ୍ଥଲୋକକୁ ଆକ୍ରମଣ କରି ନ ଥାଏ ।

★ ଏହି ରୋଗ ଏକାଠି ନଈ, ପୋଖରୀ, ନାଳରେ ଗାଧୋଇବା ଦ୍ୱାରା ହେଇଁ ନ ଥାଏ ।

★ ଯୌନ ସମ୍ଭୋଗ ସମୟରେ କଣ୍ଡୋମ ବ୍ୟବହାର କଲେ ଏବଂ ବିଶୋଧିତ ଛୁଞ୍ଚି ସିରିଞ୍ଜରେ ଇଂଜେକ୍‌ସନ୍ ନେଲେ ଏଡ୍‌ସ ରୋଗ ହେବାର ସମ୍ଭାବନା ନ ଥାଏ ।

"ଆପଣା କଲା କର୍ମମାନ
ଆଗୁ ହୋଇବ ସାବଧାନ
ଏ ଦେହ ଥିଲେ ସର୍ବପାଇ
ଜଳେ ଯେସନ ଚନ୍ଦ୍ର ଛାଇ ।"

— ଭାଗବତ